# ଆମେ ଜଣେ ।



ଶ୍ରୀ ବିଦ୍ୟାଧର ମହାନ୍ତିଙ୍କ ଦ୍ୱାରା

ପ୍ରଣୀତ ।

ପ୍ରଥମ ସଂସ୍କରଣ ।

ପ୍ରକାଶକ—

ଶ୍ରୀ ହରେକୃଷ୍ଣ ଦାଶ,

ଚନ୍ଦ୍ରୋଦୟ ପ୍ରେସ

ବାଲୁବଜାର, କଟକ ।

୧୯୨୮

ମୂଲ୍ୟ ଟ ୦ ୵ ଦୁଇଅଣା ମାତ୍ର ।

# ଉତ୍ସର୍ଗପତ୍ର ।



ମୋର ପୂଜ୍ୟ-ପାଦ ଶିକ୍ଷା-ଗୁରୁ

ସଚ୍ଚରିତ୍ର ଛାତ୍ରବତ୍ସଳଙ୍କ

ଶର ଜୀବନର ପରମ ହିତୈଷୀ

ଢେଙ୍କାନାଳ ଉଚ୍ଚ ଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ

ଦେବ-ପ୍ରତିମ ଶ୍ରୀଯୁକ୍ତ ବ୍ରଜେନ୍ଦ୍ରଲାଲ ଦତ୍ତ B. A. ଙ୍କ

ଶ୍ରୀଚରଣ-କମଳରେ

ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ ସ୍ୱରୂପ

ଏହି ସାମାନ୍ୟ ପୁସ୍ତିକା ଖଣ୍ଡି

ସାଦରେ

ଅର୍ପଣ କଲି । ଇତି ।

କଟକ କଲେଜ,
ଚୈତ୍ର ପୂର୍ଣ୍ଣିମା ଦିବସ
୧୩୩[illegible] ସାଲ ।

ଶ୍ରୀ ବିଦ୍ୟାଧର ମହାନ୍ତି ।

# ସୂଚୀପତ୍ର ।





# ଆମେ ଜଣେ



## ନାମଜାଦା ଓକିଲ ।

ଆମେ ଜଣେ ନାମ୍‌ଜାଦା
ଓକିଲ ଏହିଖଣ୍ଡେ ।
ଭାଗ୍ୟବଳୁ ଯଶବାନା
ଉଡୁଛି ସଦା ମୁଣ୍ଡେ ।
ଭୁଣ୍ଡେ ଭୁଣ୍ଡେ ଲଅଗୁଡ଼ା,
ହାସଲ ସବୁ ଗୁଣେ ।
ଲୋଡ଼ା ନାହିଁ ପୋଥିପତ୍ର,
ପଡ଼ିଛି ଘରକୋଣେ ।
ଭଲବେଳେ ଜନ୍ମ ଲଭି,
ଉଜ୍ଜଳ କଲୁ ବଂଶ ।
ପିତାମାତା ନାମ ରଖି,
ପାଉଛୁ ପଉରୁଷ ।
ନ ପଢ଼ିବେ ପାସଙ୍ଗରେ,
ଓକିଲ ଯେତେ ଅଉ ।
କୁକୁରଙ୍କ ପର ସିନା,
ହୁଅନ୍ତି ଭାଉ ଭାଉ ।
ବୁଢ଼ାଠାରୁ [illegible]ଣ୍ଡା ଯାଏ,
ମାମଲ୍‌ଖୋର ଯେତେ ।
ଦନସ୍ତ ପାଶେ ଡଖ୍ୱା
ସୁମାର ନଦେବୁ କେତେ !
ବୁଦ୍ଧିବଳେ ଫାଶିଗାଛୁ
ଦୋଷୀକ ଅଣୁ ଠାଣି ।

କଳାରଙ୍ଗ ଧଲାକର,
ଉଦର ରଖୁ ପ୍ରାଣୀ ।
(ପୁଣି) କର୍ଦ୍ଦୋଷୀକି ଦୋଷେ ମାଡ଼ି
ଦେଖାଉ ବାହାଦୁରୀ ।
ବେଲବେଲ ପରବଶେ
ବଢ଼ଇ ଆମ୍ଭ ଶିରୀ ।
ମିଛ ଆମ୍ଭ କାରବାର,
ଜୀବନ ସାର ପେଶା ।
ପାପ ପଥେ ଗୃଲି ଆମ୍ଭେ,
ଅରଜୁ ପରଶଂସା ।
ଗୋଲ ଗୋଲ ରୁପାମୁଦ୍ରା,
ଭୁଲଇ କଏ ମନ ।
ଠଣ ଠଣ ଶବ୍ଦେ ତାର
ମୋହିତ ହୁଏ କାନ ।
ଦେଖି ତାର ସୁମୂରତ,
ବିବେକ ଯାଉ ଭୁଲି ।
କ ବିଗ୍ଭରି ପରିଣାମ,
ଅନ୍ୟାୟେ ପଶୁ ଠେଲି ।
ଧନ୍ୟ ଧନ୍ୟ, ଅମ୍ଭେ ଏହି,
ଦେଶର ସୁନାପୁଅ ।
ଅମ୍ଭ ଅନ୍ତେ ଦେଶବାସୀ,
ଗଢ଼ାଇବେ କ ଲୁହ ?



'ବଲାତ ଫେରନ୍ତା'

Good morning good morning my dear friend
ବଲାତ ଫେରନ୍ତା ଅମେ;କର shake ହେଣ୍ଡ,

Indian ବ୍ୟବହାର ଦେଖି ଲଗେ ଘୃଣା,
Manner ବିଷୟ ମୂଲ୍ୟ ନାହିଁ କା'ଙ୍କୁ ଜଣା ।
କ ବର୍ଣ୍ଣିବୁ ଅବା Indian food କଥା ?
ଖାଆନ୍ତି ପଶୁଙ୍କ ତୁଲ୍ୟ, ନାହିଁ କଣ୍ଟା ପ୍ରଥା ।
European ଅଡ୍ଡାରେ ଗଢ଼ା ଏ ଜୀବନ;
ହୃଦୟେ ଜାଗ୍ରତ ସଦା high-ambition ।
ଛାଡ଼ି ନିଜ ଦେଶୀ ସାଜ, ପିନ୍ଧୁ waist coat;
ବିଲାତୀଙ୍କ favourରେ ଦେଉ ଆମ୍ଭେ Vote ।
ଖୁଲୁ ଗୋଡ଼ ଫେରେକେଇ, ମୁତୁ ହୋଇ ଠିଆ;
ଖୁମଚରେ ଖାଉ ନିତ ଅଣ୍ଡା, beef ଗୁଆ ।
ସାହେବୀ ଫେସନେ ମୁହଁରେ ଧୋବି ଲଗିଣ୍ଡି ଫିକା,
ଲାଗିଯାଉ ନିଜକାର୍ଯ୍ୟେ ତେଜ ସବୁ ଧୋକା ।
ନିଥା ସାବୁନ କିଣାରେ ସରିଗଲା ଧନ,
Change କରି ନପାରିଲୁ ଦେହର ବରନ ।
Wife ରତ୍ନ ଆମ୍ଭର ପୂରା ସାହେବାଣୀ;
ଖଞ୍ଜି ଦେଇଛନ୍ତି ବିଧାତା ତାଙ୍କୁ, ମନ ଜାଣି ।
Mother language କହିବାକୁ ମାଡ଼େ ଲାଜ;
ଅଡୁଆ ଲଗେ ଦେଖିଲେ nasty ଦେଶୀ ସାଜ ।
Most Vernacular ଏ country-fellowଗୁଡ଼ା;
କୌଣସି କାର୍ଯ୍ୟରେ ବେଳେ ନଥିଅନ୍ତି ଲୋଡ଼ା,
ମିଳାମିଶା କରିବାକୁ ଏହାଙ୍କ ସହିତ,
ଶଙ୍କାହୁଏ, honour ରେ ଘଟିବ ବ୍ୟାଘାତ ।
(ତେଣୁ) ଦେଶବାସୀଙ୍କ ସମ୍ମୁଖେ ସିଂହ ପରାକ୍ରମ;
(କିନ୍ତୁ) ସାହେବଙ୍କ ପାଖେ ମେଣ୍ଢା ଛୁଆ ପରି ନମ୍ର ।

—୦—

## କ୍ଷତ୍ରିୟ ।

କ୍ଷତ୍ରୀ ରକ୍ତେ ଗଢ଼ା ଏ ଶରୀର;
ଆମ୍ଭ ପୂରୁବ ପୁରୁଷ ରଖିଯାଇଛନ୍ତି ଯଶ,
ଯାଙ୍କ ବାହୁବଳେ କମ୍ପିଥିଲା ତିନିପୁର;
ସେହି ମହାକ୍ଷତ୍ରୀଙ୍କର ଅମ୍ଭେ ବଂଶଧର ।

ଆମ୍ଭ ପିତା, ପିତାମହ ଆଦି
ଏହି ମାତୃଭୂମି ଲାଗି ହୋଇଥିଲେ ଆତ୍ମତ୍ୟାଗୀ;
ଶିର କଣ୍ଟକ ଶତ୍ରୁଙ୍କ ସଙ୍ଗେ ବାଦ ସାଧି ।
ତାଙ୍କ ଔରସେ ଜାତହୋଇ ଅମ୍ଭେ କି ହେ ମାଧି !

ହାତ ଗୋଡେ ଲାଗିଅଛି ବେଡ଼ି,
ସିଆଁ ହୋଇଅଛୁ ପାଟି, କାମୁଡ଼ି ରହୁଛୁ ମାଟି,
ବଚସ୍କର ସମ ସିନା ଅଛୁ ଅମ୍ଭେ ପଡ଼ି,
ଶତ ସ୍ମୃତି ଖଣ୍ଡ ହୃଦ ନ ଯାଏ କି ପୋଡ଼ି ?

ଧମନୀର ରକ୍ତ ସୁଶୀତଳ,
ଖାଲି ପଡିଅଛୁ ମୃତ ନିର୍ଜୀବ-ବତ ଏ ପିଣ୍ଡୁ,
ନ ସଞ୍ଚରେ ଦେହେ ଅଉ ଅତୀତର ବଳ
ପରକୃତ ଅପମାନେ ନାହିଁ ମନେ ଛଳ ।

ଘରକୋଣେ ଥାଏ ଆମ୍ଭ ଠେକ,
ଭୁକିଲା କୁକୁର ସମ ଥିଟେ ସିନା ଅମ ଧର୍ମ,
ବାକ୍ୟଠାରୁ କାର୍ଯ୍ୟ ଖାଇ ଅନେକ ପୃଥକ,
'ମାଇପ ଅଗରେ ଅମ୍ଭେ ବୋଲାଉ ପାଇକ' ।

# ମୋଷ୍ଟ ଫ୍ୟାସନେବ୍ଲ ।

ଜୀବନର ମୁଖ୍ୟ ଉଦ୍ଦେଶ୍ୟ
ସିନା ନଅ Fashion
Fashion ବଳରେ ଉନ୍ନତ
ଆଜ କେତେ nation ।
ଏତେ ବଡ଼ ଗୋଟେ topic
କେତେଦୂର ନିଶ୍ଚିତ,
ଜଗତକୁ ଅମ୍ଭେ ଶିଖାଇ
ନଜେ ହେଲୁ ଶିକ୍ଷିତ ।
Modern fashion ହାଉଆ
ଯହୁଁ ବାଜଲା ପ୍ରାଣେ,
ନୂଆ ଅଡ଼ମ୍ବର ଭାବନା
ଜାଗି ଉଠିଲା କ୍ଷଣେ ।
Manchester ବୁଦ୍ଧି ହଜଲା
ଦେଖି ଲୁଗା ବରାଦ,
ମନୋମତ Shoes ଦେବାକୁ
କାହୁଁ Tanery ସାଧ ?
Essence କମ୍ପାନ କପାଳେ
ବୃହସ୍ପତ ପଞ୍ଚମ,
Cigarette ବଂଶ ଦୁଃଖରେ
ସାକ୍ଷୀକଲେ ଧରମ ।
ଚଲଆସି ଗେଲବସରେ
ଅମ୍ଭେ ପିଲାଟି ଦନୁ,
ସେ High atmosphere
ଭୁଲ ନଥିଲୁ ମନୁ ।

ଅର୍ଥାତ୍ Want ପଡ଼ିଲା
ଗଲୁ ସାହୁ ଦୁଆର,
ସୁଦ୍ଧ ବୃଦ୍ଧ ଘୋଟି ଆସିଲା
ଋଣ-ବିଷମ-ଜ୍ୱର ।
ନୀଚ ଲୋକମାନେ ହସିଲେ
ଦେଖି ଏ Condition;
ମହାଜନ ଦେଲା ଛଡ଼ାଇ
ଆମ୍ଭ ନୂଆ Fashion ।

---

## ରାଜାଙ୍କ ପାଖଲୋକ ।

ରାଜାଙ୍କର ଅମେ ପାଖଲୋକ ଜଣେ
ଭଲ ମନ୍ଦେ ତାଙ୍କୁ ଦେଉ ବିଗୁରି,
ଖୋସାମତ କଥା ଶୁଣାଉ ତାହାଙ୍କୁ,
ଭୁଲି ପଡ଼ିଗଲେ ହେଉ କାଣ୍ଡାରି ।
ଆମ୍ଭ ପ୍ରତି ତାଙ୍କ ବିଶ୍ୱାସ ଅଟଳ,
କ୍ଷୀର ନୀର ପ୍ରୀତି ଥାଏ ସତତ,
ଅମ୍ଭେ ପ୍ରାଣବାୟୁ, ପିଣ୍ଡ ସମ ସେହୁ,
ସର୍ବକାର୍ଯ୍ୟେ ତାଙ୍କ ଦକ୍ଷିଣ ହସ୍ତ ।
ବିଧିର ବିଧାନ କେ କରିବ ଆନ ?
ଯାହା ଭାଗ୍ୟେ ଅଛି ରାଜ ସୁଯୋଗ;
ସେ କପାଁ ଲୋଡ଼ିବ ଅନ୍ୟର ଆଶ୍ରୟ
ଛାଡ଼ି ରମ୍ୟ ହର୍ମ୍ମ୍ୟ ନବର ଭୋଗ ?
ଭାଗ୍ୟ ଦେବୀଙ୍କର ଅଦ୍ଭୁତ ଭିଆଣ
ଯାହା ପ୍ରତି ଥରେ ଦଅନ୍ତି ଦୃଷ୍ଟି,
ଅମୃତ ଭଣ୍ଡାର ଆପେ ଆପେ କାହୁଁ
ମିଳେ ତାହା ପାଶେ ବିମେଷ ପାଇଁ ।

ଏହାପରେ ଆମ୍ଭେ ହୋଇ ରାଜସଖା
ଲଭିଲୁ ଗୌରବ, ସମ୍ମାନ, ଭକ୍ତି,
ଆପଣାକୁ ମଣି ବନା ଛତ୍ରେ ରାଜା
ଗରବେ ଫୁଲାଇ ଗାଲକୁ ତୁଣ୍ଡ ।
ନେହ ବେଦ ନେଇ ମସ୍ତକେ ସ୍ଥାପିଲୁ,
ପଦରେଣୁ ତୁଲ୍ୟ ମଣିଲୁ ସର୍ବ,
ପରଜାଙ୍କ ଅନ୍ନେ କଷ୍ଟ ଦେଇ ଆମ୍ଭେ,
କଳେ ବଳେ ନେଲୁ ତାଙ୍କ ବିଭବ ।
ସହି ନପାରି ଏ ଅତ୍ୟାଚାର ବନ୍ଧୁ
ସଦବୁଦ୍ଧି ଦେଲେ ରାଜାଙ୍କ କର୍ଣ୍ଣେ,
'ପ୍ରଜା ଯୋଗୁ ପରା ତୋର ସ୍ଥିତ ବନ୍ଧୁ !
(ତାଙ୍କ) ମଙ୍ଗଳ କାମନା ନକଲୁ ଦିନେ ।'
ଖୋଲି ଗଲା ଏବେ ପ୍ରଜାଙ୍କ ସୌଭାଗ୍ୟ;
ରାମରାଜ୍ୟ ବାର୍ତ୍ତା ହେଲା ପ୍ରଚାର,
ରାଜକୋପେ ଅମ୍ଭେ ଜୀଇ ଥାଉଁ ଥାଉଁ,
ଭୋଗିଲୁ ନରକ ଯନ୍ତ୍ରଣା ଘୋର ।

——o——

## ଫଚୱାଡ ।

ବନ୍ଧୁ ମହଲେ ପଡ଼ିଛୁ ହୁରି ।
(ଅମ୍ଭେ) Most forward;
ଲାଟ ସାହେବ ହୁଅନ୍ତୁ ଖୁସା,
ତାଙ୍କ ସହିତ word
Town ମଧ୍ୟେ famous ଅମ୍ଭେ
କରିଛୁ ବଡ଼ ନାମ;
Hope ଅଛି world ଦିନେ
ଜାଣିବ ଅମ ନାମ ।

care ନାହିଁ ଗୁରୁଙ୍କୁ ଟଳେ;
father ସଙ୍ଗେ ଯୁକ୍ତି !
ବଡ଼ ଭାଇଙ୍କ presence କାଳେ
ଅମ୍ଭେ meeting–ପତି ।
ସିଗ୍ରେଟ୍ ଖାଇ free talking
ଚଳଇ ତାଙ୍କ ସଙ୍ଗେ;
ବେଳ ପଡ଼ିଲେ ଧୂଆଁ ଗୁଡ଼ାକ
ଉଡ଼ାଉ ମୁହଁ ଦଗେ ।
ଅପଣା ହାତେ ଏବକୁ ସର୍ବେ
ଚଉଦ ପାଅ ଲମ୍ବ;
କାହିଁକ ଅମ୍ଭେ ଡ଼ରିବା ତାଙ୍କୁ ?
ନାହିଁ କ ହୃଦେ ଦମ୍ଭ ?
ଭଲକାମତ କରନ୍ତୁ ସର୍ବେ,
ଅମ୍ଭ duty କାହିଁ ?
(ତେଣୁ) ଜଗତେ ଯେତେ ଅଭଲ କାମ,
leader ଅମେ ତହିଁ ।
Zeal ସହିତ work କର,
କରୁ ବଜାସ୍ତୁ ଧ୍ୱନ ।
କେତେବେଳେ ବା ଲୁହ ପୋଛୁରେ
ଟଳ୍ଲଇ ଲୁଗା କାନ୍ଧ ।

——୦——

ମାମଲତକାର ।

ମାମଲତ— କାର ଅମେ
ଦେଖିବ ଅସ ଭାଇ;
ମକଦ୍ଦମା ଅତଯାତ
ସହରେ ସଦା ଥାଇ ।

ଓକ୍କିଲରୁ ମେଜେଷ୍ଟର
ନ ଡରନ୍ତେ କଏ ମୋତେ ?
ଟଙ୍କା ଥିଲେ ଅଭାବ କ
ରହୁଛି ଏହ ମର୍ତ୍ତ୍ୟେ ?
ଗାଁଆ ଅଖ— ପାଖ ଯେତେ
ମୁଖିଆ ଲୋକ ସବୁ,
ଆମ୍ଭ ପାଖେ ଧୀର, ସ୍ଥିର;
ମଣନ୍ତ ଯେହ୍ନେ ପ୍ରଭୁ ।
ତନ୍ତ୍ରୀ ସାହ ମହାବଳ
ବଳୁଆ ତୁଲ୍ୟ ସ୍ୱାନ୍ତ;
ସିହବଳ ବୁଦ୍ଧି ମୋର,
ପାଆନ୍ତ ବଡ଼ ଖ୍ୟାନ୍ତ ।
ଆଉ ଯେତେ ବାଜେ ଲୋକ
ପଶ୍ଚରେ ତାଙ୍କୁ କଏ ?
ଅଜ୍ଞା ବକା ପ୍ରାୟ ସଦା
ଖଟନ୍ତ ମୋର ପାଶ୍ୱେ ।
ବାପାବସି ଘରକୋଣେ
ଅରଜ ଥିଲେ ଧନ;
କୂଅ ବେଙ୍ଗ ରୂପେ ରହ
କାଟିଲେ ତାଙ୍କ ଦନ ।
(କଳ୍ପ) ଯୋଗ୍ୟତମ ପୁନ ଆମ୍ଭେ
ଜନମି ତାଙ୍କ କୋଳେ;
କଷାଇଲୁ ଅମ୍ଭ ନାମ
ବଢ଼ିଆ ବୁଦ୍ଧି ବଳେ ।
ସ୍ୱାକୁ ମାର ତାକୁ ଧର
ହୋଇଲୁ ଜଗଜ୍ଜିତା ।

ଧନବନ୍ତେ ଦାନକର,
ବୋଲାଜ ଅପେ ଦାତା ।
ଗରିବଙ୍କ ତଣ୍ଟି ଚପି
ଅଣିଲୁ ଜମିବାଡ଼ୀ ।
ଟଙ୍କା ଖେଳ ଖେଳି, ମୁଣ୍ଡେ
ବାନ୍ଧିଲୁ ଜସ୍ତ-ଶାଢ଼ୀ ।
'ଧନ ଯାଉ, ମାନ ଥାଉ'
ଅମ୍ଭର ଏହି ପଣ;
କାଉଁରିଆ କାଠି ଭୁଲ୍ୟ
ମହତ୍ ଆମ୍ଭ ଗୁଣ ।
ନାହିଁ ଅନ୍ୟ ଧର୍ମ, କର୍ମ,
ସତତ ଏହି ବ୍ରତ;
ପରଅମ— ଙ୍ଗଳ କାର୍ଯ୍ୟେ
ଜୀବନ ସାରା ରତ ।

——o——

## ଖାଣ୍ଟି ବ୍ରାହ୍ମଣ ।

ଛୁଅଁ ନା ଛୁଅଁ ନା ଅମ୍ଭେ ଖାଣ୍ଟି ବିପ୍ର ସୁତ,
ଆଚାରେ ବ୍ୟବହାରେ ତ ସର୍ବଦା ପବିତ୍ର ।
ମନୋବାକ୍ୟଂ ପାଳୟିତୁଂ ଅମ୍ଭ ପ୍ରାଣ ଗଢ଼ା,
କଡ଼ା ନିୟମ ପଢ଼ିଲେ ଛାଡ଼ି ଦେଉ ଥୋଡ଼ା ।
କଦାଚିତ୍ ପଡ଼ିଯାଏ ଯଦି ଶୂଦ୍ର ଛାୟା,
ଅଶୁଚିର୍ଭବେତ ମମ ଏତାଦୃଶୀ କାୟା ।
ପୁନରପି ପିନ୍ଧୁ ଅମ୍ଭେ ନବ ଉପବୀତ,
ମହାପ୍ରସାଦ ସେବୟା ଶୁଦ୍ଧି କରୁ ଗାତ୍ର ।
ଗତଃ କୁତ୍ର ଅମ୍ଭ ବାପା, ଗୋସିବାପା କାଳ,
ଏବକୁ ବଦଳନ୍ତ ସର୍ବେ ହେବା ଏକାକାର ।

ଏକପକ୍ଷେ ଅନ୍ନଂ ଭୁକ୍ତ୍ୱା ହରାଇବା ଜାତ,
ଏକ ପ୍ରାଣେ ଘୁଞ୍ଚାଇବା ଦେଶର ଉନ୍ନତ ।
ପରହର ପରହର ତାଦୃଶ କଳ୍ପନା,
ଶୁଣି, ଉପହାସ କରିବେଟି ଅମ୍ଭ ଜନା ।
ସର୍ବେଷାଂ ବର୍ଣ୍ଣାନାଂ ଅମ୍ଭ ଜାତ ଅଟେ ରାଜା,
ଅଳଂ ନର୍ବିକାରେଣାପି, ଗୁଡ଼ି ଏଡ଼େ ମଜା ?
ରକ୍ଷଣୀୟଃ ସ୍ୱପ୍ରଜାତଃ ମତ୍ୱା ଯଥାସାଧ୍ୟ,
ଦେଖାଇ ପ୍ରଭୁତ୍ୱ, ହେବୁ ସର୍ବସ୍ୟ ଅଗ୍ରାଧ୍ୟ ।
ପ୍ରବର୍ତ୍ତାଇ ନ ପାରିଲ୍ କକେଇଙ୍କି ଏକା,
ଅର୍ଥଲୋଭେ ବ୍ୟବସାୟ କଲେ କନ୍ୟା ବିକା ।
ସ୍ୱୀୟଃ ବ୍ୟବହାରଂ ଦୃଷ୍ଟ୍ୱା, ମାଡ଼େ ବଡ଼ ଲାଜ,
ବିନା ସ୍ନାନେ କରନ୍ତ ସେ ସ୍ୱପ୍ରୋଶତ କାର୍ଯ୍ୟ ।
ଅମ୍ଭ କୃତ ମହାପାପ ନୁହେଁ ପାପେ ଗଣା,
ଅପର ଜାତଙ୍କ ପ୍ରତ ବଡ଼ କଠକଣା ।

---

## ବଡ଼ଲୋକର ପୁଅ ।

ଅମ୍ଭ ବାପା ଜଣେ ବଡ଼ଲୋକ,
ମାସିକ ହଜାର ସଂଖ୍ୟା ଆଣନ୍ତ ଘରକୁ ଟଙ୍କା,
ମଉଜରେ କାଲକାଟି, ଭୁଞ୍ଜୁ ସ୍ୱର୍ଗ ସୁଖ,
ଖଟିଥାନ୍ତ ଦନ ରାତ ଅଂସଖ୍ୟ ସେବକ ।

ବାବୁଙ୍କର ବଡ଼ ପୁଅ ଅମ୍ଭେ,
ଶିକ୍ଷିତ ସମାଜେ ସଦା ପାଉ ସେନେହ ଶରଧା,
ଦେବତା ସମାନ ଅଟୁ ଅଶିକ୍ଷିତ ଗ୍ରାମେ,
ଭଲ ଭୋଗ ଖଞ୍ଜିଥିଲ୍ ବିଧାତା କରମେ ।

ନାମକୁ କେବଳ ପାଠପଢ଼ା,
ସଙ୍ଗେ ଯେନ୍ନ ସାଙ୍ଗସାଥୀ, କବା ଦନ କବା ରାତି;
ଚଢ଼ୁ ଅମେ ସାଇକଲ, କେବେ ଅବା ଘୋଡ଼ା,
ମିଳିଯାଏ ପାଶେ, ଯାହା ଯେତେବେଳେ ଲୋଡ଼ା ।
ଭଲ ରୂପେ ଫାଜଲାମୀ ଜଣା,
ଆପଣା ବଡ଼ିମାବଳେ ନ ମାନୁ କାହାକୁ ତଳେ,
ଭାବୁ ଅମ୍ଭେ ଏକା ବଡ଼ଲୋକ ମଧ୍ୟେଗଣା,
ଶଙ୍କିଯାନ୍ତି ଲୋକେ ଦେଖି ଅମ୍ଭ ବୁଝାମଣା ।
କେତେଦନେ ବାପା ଗଲେ ଚାଲି;
ହେଲୁ ଅମ୍ଭେ ସ୍ୱେଚ୍ଛାଚାରୀ, ଘରେ ନ ରହଇଲୁ ବାକି
କଣା ହେଲା କେତେ ମଦ, ଅଫୁ, ଗଞ୍ଜାକଲି,
ଛୁଡ଼ିଗଲା କେତେ ମୁଠା ନୂଆ ପଣା ପାଲି ।
ଲକ୍ଷ୍ମୀ କନ୍ଧ ଖସିଲେ ଅମ୍ଭର,
ପେଟକୁ ନ ମିଳେ ଦାନା, ପିନ୍ଧିବାକୁ ନାହିଁ କନା,
ତଥାପି ପୂରୁବ ଗର୍ବ ହୋଇନାହିଁ ଦୂର,
"ବଡ଼ଲୋକ ପୁଅ ଅମେ ସଂସାରରେ ସାର ।"

---

## ବ୍ରିଲିଆଣ୍ଟ ସ୍କଲାର ।

Public ଜାଣଇ ଅମ୍ଭଙ୍କୁ
Brilliant scholar.
ଇସ୍କୁଲରେ ଶୋଭା ପାଉଛୁ
ଯେହ୍ନେ କୀର୍ତ୍ତି-pillar.
ଅଦ୍ୟ position ରହୁଛି
ଅମ୍ଭପାଇଁ ସାଇତା ।
ଘାତ ଅନ୍ଧଦ୍ୱାରେ ନ ପାନ୍ତି
ଯୁବା କେହ ତା ପତ୍ତା ।

(ତେଣୁ) Care ନଥାଏ ଗୁରୁଙ୍କୁ;
ଗୁଲୁ ଫୁଲାଇ ଗ୍ଭଲି !
ବଡ଼ ବୋଲି ଭାବୁ ନିଜକୁ
ବୃଥା ଗରବେ ମାତି ।
ସଙ୍ଗ ପଢୁଆଙ୍କୁ ଦେଖିଲେ,
କରୁ disregard;
Opportunity ପଡ଼ିଲେ,
ଦେଉ ଚଢ଼ାଇ ମାଡ଼ ।
ଜୀବନର କାର୍ଯ୍ୟ କଳାପ
ଦେଖି ଡ଼ରିବ ଯମ;
ଛାତ୍ର ସମାଜରେ 'ବଜାଣ୍ଡି"
ଅମ୍ଭ ଗୁପତ ନାମ ।
ପିତାଙ୍କର ମନ ଆନନ୍ଦ
'ପୁଅ ପଢ଼ନ୍ତି ପାଠ;
ପାଆନ୍ତି ପ୍ରଥମ prize
ହୋଇ ପ୍ରଧାନ ଛାତ୍ର'
ବିଦ୍ୟାଗୁଣ ଏକା ସଂସାରେ
ଶ୍ରେଷ୍ଠ ଗୁଣରେ ଗଣା;
ଚରିତ୍ରକୁ କିଏ ପଗ୍ଭରେ ?
ମନେ ଥିଲା ଧାରଣା ।
(କିନ୍ତୁ) ବନେ ଯାଇ ଖୋଲି ଦେଖିଲି
ମୋର conduct ବନ୍ଧୁ;
ଏଡ଼େ ମୂଲ୍ୟବାନ୍ life
ମାଟି ହୋଇଛି ତହିଁ ।

———o———

## ସ୍କାଉଟ୍ ।

ନିଶ୍ଚିନ୍ତରେ ଖାଇ ଯାପ ଏବେ କାଳ;
ନାହିଁ ବିପଦର ସେ ପୂରୁବ ବଳ;
ଏ ନବୀନ ଯୁଗେ ନବୀନ ଆବେଗେ
ଜାଗିଅଛୁ ଅମ୍ଭେ ନବ ଯୁବା ଦଳ ।
ନିଶ୍ଚିନ୍ତରେ ଖାଇ ଯାପ ଏବେ କାଳ ।
ବିପନ୍ନସାହାଯ୍ୟ ଚିରନ୍ତନ ବ୍ରତ,
ଜୀବନ ଅମ୍ଭର ପରହିତେ ରତ;
*ଦଶଆଜ୍ଞା ମାନି ଚଳିବା ଉଦ୍ଦେଶ୍ୟ
ପାଇଅଛୁ ଅମ୍ଭେ ସ୍କାଉଟ ସଙ୍କେତ ।
ବିପନ୍ନ ସାହାଯ୍ୟ ଚିରନ୍ତନ ବ୍ରତ ।

* * *

ଭୁଲିନା ଭୁଲିନା ମଶାଟିକା ଦେଖି,
ଗାଣ୍ଡିମୁଣା ଢଗେ ନପକାଅ ଅଖି:
ମୁଣ୍ଡପଗଡ଼ିଟା କହୁ ନୁହିଁ ଖାଇ
ଫୁର୍ତ୍ତି ଯୋଗୁଁ ସିନା ଏତେ ଠକାଠକ ।
ଭୁଲିନା ଭୁଲିନା ମଶାଟିକା ଦେଖି ।
କେତେ କେତେ ରୋଗୀ ମରୁଛନ୍ତି ଗଡ଼ି,
ଲକ୍ଷ ଲକ୍ଷ ଘର ଯାଏ ନଷ୍ଟ ପୋଡ଼ି;
କିଏ ତା ପଛରେ ? ଆଶା ଅଛୁ ମାଫ
ସରକାର ଘରୁ ମିଳିବ ତ ପଡ଼ି ।



---

* ସ୍କାଉଟ୍‌ମାନେ ଦଶଟି ଆଦେଶ ( Loyal to the king, loyal to the country ପ୍ରଭୃତି ) ମାନି ଚଳିବାକୁ ପ୍ରତିଜ୍ଞାବଦ୍ଧ ହୁଅନ୍ତି ।

# ଟିଚେର ।

Teacher ନାମରେ ଅଭିହିତ ଅମେ
"teaching ପ୍ରଣାଳୀ ଉତ୍ତମ ଜଣା,
ଖାଇ ଅମ୍ଭ ବେତ, କେତେ କେତେ ଗ୍ରୁଣ
ହୋଇ ଛନ୍ତି ଜନ ସମାଜେ ଗଣା ।
ଉପର ହାକିମ ଆସନ୍ତି ଯେତେକ,
care ନଥାଏ କାହାକୁ ତଳେ;
ଲମ୍ବୀ ଲମ୍ବା certi- ficate ଦେଇଣ,
ବଢ଼ାଇ ଦଅନ୍ତି ଦରମା ଠୁଳେ ।"
ଏହିପରି ନିଜ ବାହାଦୁରୀ କଥା
ଗ୍ରୁଣଙ୍କ ସମ୍ମୁଖେ ବଖାଣି ନିତ,
ଅପଣା inteligence ପରକାଷ୍ଠା
ଦେଖାଉ ତାହାଙ୍କୁ ଅଗ୍ରହେ ଅତି ।
ଅନ୍ୟ teacherଙ୍କ teaching ସମ୍ବନ୍ଧେ
କରିଥାଉ criticize କେବେ;
ଭିତରେ ଭିତରେ plan ଖୋଜୁ; ତାଙ୍କୁ
ଫାନ୍ଦରେ ପକାଇ ଦେବାକୁ ଲବେ ।
Student ମାନଙ୍କ ଛିଦ୍ର ଖୋଜ ବସୁ;
ଉପଦେଶ ଦେବା ଦୂରର କଥା;
ଚଲଟିକୁ ତାଲ କରିବା ଶକତ
ଦେଇଛନ୍ତି ଅମ୍ଭ ହୃଦେ ବିଧାତା ।
Partiality ଅମ୍ଭ ସ୍ଵାଭାବିକ ଗୁଣ
power ବିସ୍ତାରେ ସର୍ବଦା ପଟୁ;
ଫଳରେ ନିଜର ସମ୍ମାନ ହରାଇ
ବନ୍ଦୁସ୍ଥାନ ଭବେ ଜୀବନ କାଟୁ ।



## ରସିକ ।

ନୂତନ ରସିକ ନାମରେ
ଆମ୍ଭେ ସବୁଠି ଜଣା;
ଶୟନେ, ସ୍ୱପନେ, ଜାଗ୍ରତେ
ସଦା ପ୍ରେମ କଳନା ।
ଗୋରଚନା ଟୀକା ମସ୍ତକେ
ମୁଖେ ତାମ୍ବୁଳ ଖିଲି
ଲାବଣ୍ୟ ମୂରତ ଦେଖିଲେ
କିଏ ନଯିବ ଭୁଲି ?
କର୍ଣ୍ଣରେ ଶୋଭଇ କୁଣ୍ଡଳ,
ଗଳେ ସୁବର୍ଣ୍ଣ ହାର;
ଶତ୍ରୁ ସୁଦ୍ଧା ଦେଖି ଅମ୍ଭଙ୍କୁ,
ତେଜ ଦେବ ଅହାର,
ଭାଗ୍ୟବନ୍ତ ଅମ୍ଭେ ଅଦ୍ଭୁତ
ରାଣ୍ଡୀ ପୁଅ ଅନନ୍ୟା;
ନିଷ୍ଟିଲରେ ଖାଇ ପେଟକ
ହେଉ ଉଦ୍ଦୁରମତା ।
ବାକ୍ୟରୁ ଅମ୍ଭର ଝରୁଛି
ସଦା ସ୍ୱର୍ଗ ଅମୃତ;
ଗୁପତ ଚୁମ୍ବକ ପ୍ରସ୍ତର
ନେତ୍ର ଅଗ୍ରେ ନିହିତ ।
ଭୀଷଣ ପ୍ରେମ-ବାରଧିକ
ତେଇଁ ତାହା ସାହାଜ୍ୟେ,
ନିମିଷେକ ପାଇଁ ଅସନ
କରୁ-ସରଗ-ରାଜ୍ୟେ ।

ଘରେମାନ ମାତା, ଭଗିନୀ
ଖୋଲ ପ୍ରେମ ଦୋକାନ,
ବହୁଛନ୍ତି ନନ୍ଦା ପସରା;
ଶୁଣି ହଜିଲା ଜ୍ଞାନ ।



## ନନ-କୋପରେଟର ।

ଇସ୍କୁଲ ଛାଡ଼ି ହୋଇଛି ମୁହିଁ
Non-co-operator
Mother-land ଉନ୍ନତ ପାଇଁ
ଢାଳିଛି ପ୍ରାଣ ମୋର ।
କର୍ମକୁ କାହୁଁ ପ୍ରବେଶି ଗାନ୍ଧୀ
କହିଲେ ଛାଡ଼ ପାଠ;
Chance ପାଇ ମନ ଆବେଗେ
ଧରିଲି ତାଙ୍କ ବାଟ ।
History ଗୁଡ଼ା କେଉଁଠା ମାନ,
geography ବଡ଼ dry
ଗଣିତ ଜ୍ଞାନ ନହେଲା କଷ୍ଟ,
ଯେତେ ମୁଁ କଲି Try ।
ସଂସ୍କୃତ ଯେତେ ଲେଖିଲେ ପୁଥା
ପଣ୍ଡିତ ଦଏ କାଟି ।
ବୁଦ୍ଧି ବଳରେ ଫୁଟିଲି ଏଣେ,
ସଭିଙ୍କି ମାର ପଟି ।
First duty ଖାଦଡ଼ ପିନ୍ଧା,
ତା ପରେ ଦେଶକାମ;
Hard task ପଡ଼ିଲା ମୋତେ
ବୁଲି ସହର, ଗ୍ରାମ ।

ଅରଟ ଘେନ କାଟିଲି ସୂତା,
ଖାଇଲି ହାତେ ଗାଢ;
ପୂରୁବ ସୁଖ ସ୍ମରଣ କରି,
ମଲି ମୁଁ ହୋଇ ଧନ୍ଦ ।
ସ୍ୱଦେଶ ପାଇଁ ପଶିଲେ ସନ୍ତୁଁ
Prison ଘରେ କେତେ;
ପ୍ରାଣ ଆତଙ୍କେ କର୍ତ୍ତବ୍ୟ ଜ୍ଞାନ
ବଶିଲା ନାହିଁ ମୋତେ ।
ବଦାନ୍ୟ ଘେନ ସ୍ୱଦେଶ କାର୍ଯ୍ୟ,
ମନରେ କଲି ସ୍ଥିର;
ଅଉକ ଲୋଡ଼ା ? ନାମତ ହେଲି
Non-co-operator,



## ସନ୍ନ୍ୟାସୀ ।

ତେଜି ସଂସାରର ସୁଖ ଭୋଗ,
ଗାଇ ମୁଖେ ହରି ନାମ ଫେରୁଛୁ ଧାମକୁ ଧାମ;
ନାହିଁ ରାଗ, ଅହଙ୍କାର; ସାଧୁଙ୍କୁ ଯୋଗ;
ହରି-ଲୀଳା ଶୁଣି ପବିତ୍ର ଏ କର୍ଣ୍ଣଯୁଗ ।
ଆମ୍ଭେ ପରା ପ୍ରଭୁଙ୍କର ସଖା;
ଆମ୍ଭ ତପେ ହୋଇ ତୋଷ ନିଜେ ପ୍ରଭୁ ପୀତବାସ
ପ୍ରସାରିଣ ଚତୁର୍ବାହା, ଦେଇଥିଲେ ଦେଖା;
ଏହି ଦେହେ ସ୍ୱର୍ଗେ ହେବୁ ଦେବଗଣେ ଲେଖା ।
ତେଣୁ ଆମ୍ଭ ମହିମା ଅପାର;
ବିଶ୍ୱବାସୀ ଆମ୍ଭପ୍ରତି ଦେଖାନ୍ତି ଅଚଳା ଭକ୍ତି
ବୁଝି ନ ପାରନ୍ତି ଆମ୍ଭ ଭଣ୍ଡ ବ୍ୟବହାର,
ମଣନ୍ତି ପ୍ରଭୁ ଲୀଳାରେ ଗଢ଼ା ଏ ଶରୀର ।

ପେଟଭରି ମିଳଇ ଭୋଜନ,
ଲଗାଇ ଗଞ୍ଜାର ଧପ     ମାରୁଥାଉ ବଥା ଗପ;
କେବେ ମୁଖରୁ ବାହାରେ ଭବିଷ୍ୟ ବଚନ;
ଅଭିଶାପ ଭୟେ ପୂଜି ନକରେ କେ ଜନ ।
ଲୋଭ କ୍ରୋଧେ ଆମ୍ଭ ହୃଦ ଭରା,
କାମାନଳେ ହୋଇ ପାରି,     ଲୋଡ଼ୁ ସଦା ପ୍ରେମ-ବାରି;
ମହାକାଳ ଫଳ ସମ ଦିଶୁ ଆମ୍ଭେ ତୋରା,
ପେଟଲାଗି ପିନ୍ଧୁଥାଉ କଉପୁନି, ମାଳା ।
ଏ ଜୀବନ ଅଟେ ପାପମୟ;
ଉଦର ଗରଳସିନ୍ଧୁ,     ମୁଖେ ଥାଏ ସୁଧା ବିନ୍ଦୁ
ବାକଚାତୁରୀରେ କରୁଅଛୁ ବିଶ୍ୱ ଜୟ;
କାଳେ କିଏ ଚିହ୍ନିଦେବ ଚତେ ସଦା ଭୟ ।



ସମାପ୍ତ ।

Printed by H. K. Das, Chandrodaya Press, Cuttack,

By the same author.

| | | |
|---|---|---|
| ପିଲାଗୀତ | | ଃ ୦ /୨ |
| ଅମେଳଣେ | | ଃ ୦ ୵ |
| ସଚିତ୍ର ପିଲାଗୀତ ( ପରିବର୍ଦ୍ଧିତ ଓ ସଂଶୋଧିତ ) | } | ଯନ୍ତ୍ରସ୍ଥ |
| ନିରୁପମା ( ସାମାଜିକ ଉପନ୍ୟାସ ) | } | ଯନ୍ତ୍ରସ୍ଥ |
| ଆମ ଢେଙ୍କାନାଳ ( ସଂକ୍ଷିପ୍ତ ଐତିହାସିକ ଓ ଭୌଗୋଳିକ ବିବରଣ ) | } | ଯନ୍ତ୍ରସ୍ଥ |